ପିତୃଦେବଙ୍କ ସ୍ମୃତି-ରକ୍ଷାର୍ଥ

# ପ୍ରୀତି-ଉପହାର ।

ଶ୍ରୀଯୁକ୍ତ ଶ୍ରୀ [illegible]

ସମୀପେଷୁ ।

। ସା । ଢେଙ୍କା
ମୀନ ୧୬ ଦିନ
ସନ ୧୩୨୩ ସାଲ ।
ଶୁକ୍ରବାର

ଶ୍ରୀବୈଦ୍ୟନାଥ ।

# ଉତ୍ସର୍ଗ ପତ୍ର ।



ପରମାରାଧ୍ୟା ଜନନୀ ଶ୍ରୀମତୀ ଗୋଦାବରୀ ଦେବୀ

ଚରଣକମଳେଷୁ—

ମାତଃ,

ପତି ବିଯୋଗ ଦୁଃଖରେ ତୁମ୍ଭର ଅନ୍ତର ଚିର ଅନୁତପ୍ତ । ସେହି ସନ୍ତପ୍ତ ପ୍ରାଣରେ ସ୍ନେହବାରି ସେଚନ କରିବାକୁ ମୁଁ ଏକମାତ୍ର ଭାଜନ । ମୁଁ ମୋର କ୍ଷୁଦ୍ର ଶକ୍ତିରେ ପିତୃଦେବଙ୍କ ଜୀବନୀ ସଂକ୍ଷେପରେ ଲିପିବଦ୍ଧ କରି ଆପଣଙ୍କ ପାଦପଦ୍ମରେ ଭକ୍ତିର ନିଦର୍ଶନ-ସ୍ୱରୂପ ଅର୍ପଣ କଲି । ସାଦରେ ଗ୍ରହଣ କଲେ ଶ୍ରମ ସାର୍ଥକ ମଣିବି । ଇତି ।

ଅଧମ ସନ୍ତାନ

ରାଧାନାଥ ।

# ଭୂମିକା ।



ମହାଜନ ପୂଜା ଅସ୍ମମାନଙ୍କ ଦେଶରେ ବିଶେଷତଃ ଓଡ଼ିଶାରେ ଏକାନ୍ତ ବିରଳ; ତଥାପି ମୁଁ ମୋର କ୍ଷୁଦ୍ର ଶକ୍ତିରେ ମୋର ପିତାଙ୍କର ଅସୀମ ଗୁଣସାଗରରୁ ଯତ୍‌ସାମାନ୍ୟ ଗୁଣର ଦୃଷ୍ଟାନ୍ତ ଓ ତାଙ୍କର ସଂକ୍ଷିପ୍ତ ଜୀବନୀ ମୋର ବନ୍ଧୁ ଓ ଗୁରୁଜନମାନଙ୍କୁ ଉପହାର ଦେବା ଭରସାର ବଶବର୍ତ୍ତୀ ହୋଇ ଏ କ୍ଷୁଦ୍ର ପ୍ରବନ୍ଧଟିର ଅବତାରଣା କରିଅଛି । ଅବଶ୍ୟ ପିତାର ପ୍ରଶଂସା ବା ପୂଜା ସନ୍ତାନର କର୍ତ୍ତବ୍ୟ ହେଲେହେଁ ଅସ୍ମମାନଙ୍କ ସମାଜରେ ଅପ୍ରୀତିକର ହୋଇପାରେ । କିନ୍ତୁ ବାଲ୍ୟଚପଳତାର ବଶବର୍ତ୍ତୀ ହୋଇ ଏପରି ଗୁରୁତର କାର୍ଯ୍ୟରେ ହସ୍ତକ୍ଷେପ କରିଅଛି । ସ୍ଥାନେ ସ୍ଥାନେ ଭ୍ରମ ଥିବାର ମଧ୍ୟ ସମ୍ଭାବନା । ପାଠକ କ୍ଷମା ଦେଲେ ଚରିତାର୍ଥ ହେବି । ଇତି ।

ଭେଡ଼ା ।
୨୮ । ୨ । ୧୬

ଲେଖକ ।

# ପିତୃଦେବ ।



"ଲକ୍ଷ୍ମୀ ନୃସିଂହ ମମ ଦେହି କରାବଲମ୍ବଂ ।"



ସଂସାରର ପିତା କିଏ ? କିଏ କାହାର ପିତା ? କିଏ ଏ ସଂସାରର ପାଳନକର୍ତ୍ତା ? ଏ ନିଖିଳ ଅବନୀର ପାଳନର ଭାର କାହା ଉପରେ ନ୍ୟସ୍ତ ? ଏହି ପ୍ରଶ୍ନସକଳ ମନ ମଧ୍ୟରେ ଉଦିତ ହେଲେ, ସେହି ପରମକାରୁଣିକ ସର୍ବପ୍ରଭୁ ପରମେଶ୍ୱରଙ୍କୁ "ପରମପିତା" ବା "ଜଗତ୍‌ପିତା" ବୋଲି ନ କହି ରହି ହୁଏ ନାହିଁ। "ଜଗତ୍‌ପିତା" ପରମେଶ୍ୱର ଜଗତର ପ୍ରତ୍ୟେକ ପ୍ରାଣୀର ପିତା ବା ପାଳନକର୍ତ୍ତା; କିନ୍ତୁ ପ୍ରତ୍ୟେକର ବ୍ୟକ୍ତିଗତ ପିତା ଏ ସଂସାରରେ ଅମ୍ଭମାନଙ୍କର ଜନ୍ମଦାତା । ସେ ସନ୍ତାନର ଦେବତା । ପରମପିତାଙ୍କ ପର ସେ ମଧ୍ୟ ତାଙ୍କର ସୃଷ୍ଟି, ସୀମା ମଧ୍ୟରେ ନିଜ ସନ୍ତାନମାନଙ୍କର ଅଧିଦେବତା । କବି ଯଥାର୍ଥ କହିଅଛନ୍ତି—

"ପିତା ଧର୍ମଃ ପିତା ସ୍ୱର୍ଗଃ ପିତା ହି ପରମଂ ତପଃ ।
ପିତରି ପ୍ରୀତିମାପନ୍ନେ ପ୍ରୀୟନ୍ତେ ସର୍ବଦେବତାଃ ।"

ଯେଉଁ ପିତା ଏପର ଉଚ୍ଚସ୍ଥାନୀୟ ସେ ଯେ ପୁତ୍ରର କେତେ-ଦୂର ଅଗାଧ ତାହା ପ୍ରକାଶ କରିବା ବାହୁଲ୍ୟ ମାତ୍ର ।

ପିତା ପୁତ୍ରର ସମ୍ପର୍କ କେନ୍ଦ୍ରଗତ ଅର୍ଥାତ୍ ହୃଦୟର ଗମ୍ଭୀର-ତମ ପ୍ରଦେଶରୁ ସଂଯୁକ୍ତ । ତାହାର ବନ୍ଧନ ନାହିଁ, ଅପାତତଃ ଏ ମର ଜଗତରେ ତାର ବଲୟ ନାହିଁ । ଯଦି ଏ ସଂସାରରେ କେହି କାହାର ଥାଏ, ତେବେ ପିତା ପୁତ୍ରର, ପୁତ୍ର ପିତାର । ପୁତ୍ର ପିତା ନିକଟରେ ଶତ ଦୋଷ କରିଥିଲେହେଁ, ଅଧମ ପୁତ୍ର ପିତାର କୋମଳାନ୍ତଃକରଣରେ ଶତ ମର୍ମବେଦନା ଜନ୍ମାଇ-ଥିଲେହେଁ ପିତାର ହୃଦୟ ପୁତ୍ରର ଦୁଃଖରେ କାନ୍ଦି ଉଠିବ । ରାମଚନ୍ଦ୍ରଙ୍କ ପରି ଅଟଳ ପ୍ରତିଜ୍ଞର ହୃଦୟ ତ୍ୟକ୍ତକୁମର ଲବ କୁଶଙ୍କଦ୍ୱାରା ଯୁଦ୍ଧକୌଶଳରେ ଅପମାନିତ ହୋଇ ସ୍ୱୀୟ କୁମର ଦୁହିଙ୍କୁ ଦେଖି ଓ ପରିଚୟ ପାଇ ଅସ୍ଥିର ହୋଇ ପଡ଼ି-ଥିଲା । ତ୍ୟକ୍ତା ଶକୁନ୍ତଳାର ଔରସଜାତ ଶିଶୁ ଭରତଙ୍କୁ ଦେଖି ରଜା ଦୁଷ୍ମନ୍ତଙ୍କର ଅନ୍ତର ନାଚି ଉଠିଥିଲା । ପିତା ପୁତ୍ରର ସମ୍ପର୍କ ନୈସର୍ଗିକ । ମୁଁ ଏହି ସମ୍ପର୍କର ଅଧୀନ । ଜନ୍ମର ନବମ ମାସରେ ପିତୃଧନ ହରାଇଥିଲେହେଁ ଏ ପିଣ୍ଡର ଅବସ୍ଥିତି ପର୍ଯ୍ୟନ୍ତ ସେ ସମ୍ପର୍କଚ୍ୟୁତ ନୁହେଁ । ଏଣୁ ଏ କ୍ଷୁଦ୍ର ପ୍ରବନ୍ଧର ଅବତାରଣା କରୁଅଛି ।



## ପିତାଙ୍କର ସଂକ୍ଷିପ୍ତ ଇତିହାସ ।

ସନ ୧୨୭୫ ସାଲ ମକର ୭ ଦିନ ତତ୍ତ୍ୱଦର୍ଶୀ ୰ଗୋପାଳଚନ୍ଦ୍ର ମିଶ୍ରଙ୍କ ଔରସରେ ୰କମଳା ଦେବୀଙ୍କ ଗର୍ଭରୁ ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ପିତା ତାଙ୍କୁ "ସୋମନାଥ" ଆଖ୍ୟା ପ୍ରଦାନ କରିଥିଲେ । ଜନ୍ମର ୫ ବର୍ଷ ପରେ ସେ ମାତୃଧନ ହରାଇ ଏ ଦୁଃଖମୟ ସଂସାରର ପ୍ରଥମ ଆସ୍ୱାଦ ପାଇଥିଲେ । କେତେକ ବର୍ଷ ଏହିପରି ମାତୃହୀନ ଅବସ୍ଥାରେ ଅତିବାହିତ କଲା ପରେ ଦେବୀ--ତୁଲ୍ୟା ଶ୍ରୀମତୀ ହୀରା ଦେବୀଙ୍କୁ ବିମାତାରୂପେ ପାଇଲେ । ହୀରା ଦେବୀ ସପତ୍ନୀ ପୁତ୍ରକୁ ନିଜ ଗର୍ଭଜାତ ପୁତ୍ର ପରି ଯତ୍ନ କରୁଥିଲେ । ଏଣୁ ସେ କିୟତ୍‌କାଳପାଇଁ ମାତୃଶୋକ ଭୁଲି ଯାଇଥିଲେ । ମାତ୍ର ସେ ଜାଣି ନ ଥିଲେ ଯେ ଏତେ ଶୈଶବାବସ୍ଥାରେ ଅତ୍ୟଳ୍ପ କାଳ ମଧ୍ୟରେ ପୁନର୍ବାର ପିତୃଧନ ତୁଲ୍ୟ ମହାର୍ଘ ଧନ ହରାଇ କଣ୍ଟିକାମୟୀ ପୃଥିବୀରେ ପୁନଃ ଭୀଷଣ ତମସାବୃତ ହେବେ । ପିତୃବିୟୋଗ କାଳରେ ତାଙ୍କୁ ଅବେ ୧୦ ବର୍ଷ ବୟସ ମାତ୍ର । ତାଙ୍କ ହୃଦୟରେ ଏ ବିୟୋଗ କେତେଦୂର ପ୍ରତିଘାତ ଦେଇଥିବ ତାହା ଅନୁଭବୀ ବ୍ୟତୀତ ଅନ୍ୟ କେହି ବୁଝି ପାରିବେ ନାହିଁ । ସମସ୍ତ ଜଗତକୁ ସେ ଅନ୍ଧକାରମୟ ଦେଖି ସୁକୁମାର ବୟସରୁ ଉପର ଉଦା-

ସୀନତା ଶିକ୍ଷା କରିଥିଲେ ତାହା ତାଙ୍କର ଭବୀ ଜୀବନରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ।

ବାଲ୍ୟକାଳରୁ ବିଦ୍ୟାଶିକ୍ଷା ପ୍ରତି ତାଙ୍କର ବିଶେଷ ଆଦର ଥିଲା । ଏପରି କି ସେ ତାଙ୍କର ବିଦ୍ୟାଗୁରୁଙ୍କର ପ୍ରିୟତମ ଛାତ୍ର ହୋଇ ପଢ଼ୁଥିଲେ । ସେ ପ୍ରଥମେ ଚାଟଶାଳାରେ ଅଧ୍ୟୟନ କରି ସେଠାରୁ ସମ୍ମାନରେ ଉତ୍ତୀର୍ଣ୍ଣ ହେଲେ । ତତ୍‌ପରେ ଉଚ୍ଚ ପ୍ରାଥମିକ ବୃତ୍ତି ପରୀକ୍ଷାରେ ପାଶ କରି ୰ରାୟ ରାଧାନାଥ ରାୟ ବାହାଦୁର ( ତଦାନୀନ୍ତନ ବିଦ୍ୟାଳୟ ସମୂହର ଇନ୍‌ସପେକ୍ଟର)ଙ୍କଠାରୁ ପ୍ରଶଂସାପତ୍ର ଲାଭ କରିଥିଲେ । ଉଚ୍ଚ ପ୍ରାଥମିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଉଚ୍ଚ ଶିକ୍ଷା ନିମନ୍ତେ ସ୍ଥାନାନ୍ତରକୁ ଯାଇ ଅଧ୍ୟୟନ କରିବାର ସୁବିଧା ନ ଥିବାରୁ ସେଥିରୁ ବିରତ ହୋଇ ପଣ୍ଡିତ ଶ୍ରୀ ବିଦ୍ୟାଧର ବିଦ୍ୟାଭୂଷଣଙ୍କ ଗୃହରେ ରହି ସଂସ୍କୃତ ଅଧ୍ୟୟନ କଲେ । ସଂସ୍କୃତସାହିତ୍ୟରେ ତାଙ୍କର ବ୍ୟୁତ୍ପତ୍ତି ଦେଖି ଅନେକ ପଣ୍ଡିତ ତାଙ୍କୁ ଭୂରି ଭୂରି ପ୍ରଶଂସା କରିଥିଲେ । ବିଶେଷତଃ ତାଙ୍କର ଧୀମତ୍ତା ଓ ପ୍ରତିଭାର ପରିଚୟ ପାଇ ଅଧ୍ୟାପକ ମହାଶୟ ସୁଦ୍ଧା ବିସ୍ମିତ ହୋଇଥିଲେ । ସେ ଅଷ୍ଟାଦଶ ବୟଃକ୍ରମ ସମୟରେ ଗୃହସ୍ଥା-ଶ୍ରମରେ ପ୍ରବେଶ କରି ୩ ବର୍ଷ ପରେ ଶ୍ରୀମତୀ ଚନ୍ଦ୍ରମଣି ଦେବୀଙ୍କ କନ୍ୟାସନ୍ତାନରୂପେ ଲାଭ କରିଥିଲେ । ପୁନର୍ବାର ଶ୍ରୀମତୀ ଇନ୍ଦୁମଣିଙ୍କୁ ୪ ବର୍ଷ ପରେ ପାଇଲେ । ତତ୍ପରେ ପୁତ୍ର-

ସନ୍ତାନ ଲାଭ କରିବାର କାମନା ବଳବତୀ ହେବାରୁ ସେ ମହାବିନାୟକ ମହାପ୍ରଭୁଙ୍କର ଆଶ୍ରୟ ଗ୍ରହଣ କଲେ । ତାର ଦୁଇ ବର୍ଷ ପରେ ଅର୍ଥାତ୍ ୨୭ ବର୍ଷ ବୟଃକ୍ରମରେ ମୋତେ ମହାବିନାୟକଙ୍କ କୃପାରୁ ପୁତ୍ରରୂପେ ଲାଭ କଲେ । ପୁତ୍ର ମୁଖ ଦେଖି ଭାବିଥିଲେ ଜୀବନବ୍ୟାପୀ ଦୁଃଖର ଅବସାନ ହେବ, ଏଣିକି ସୁଖସ୍ୱଚ୍ଛନ୍ଦରେ ଅବଶିଷ୍ଟ ଜୀବନ ଅତିବାହିତ କରିବେ; କିନ୍ତୁ କାଳର ଗତି ବିଚିତ୍ର! ବିଧିର ବିଧାନ ଅଲଙ୍ଘନୀୟ! କିଏ ଜାଣିଥିଲା ଯେ କରାଳ କାଳ ମୁଖ ବ୍ୟାଦାନ କରି ସୁକୁମାର ଜୀବନ ନେବାକୁ ଠିାକ ରହିଅଛି ! କିଏ ଜାଣିଥିଲା ଯେ ସେ ପତିପ୍ରାଣା ସ୍ତ୍ରୀ ଓ ଶିଶୁସନ୍ତାନ ତାଙ୍କୁ ଶୋକସାଗରରେ ଭସାଇ ଦେଇ ଚିରବିଦାୟ ନେବେ ! କିଏ ଭାବିଥିଲା ଯେ ନଅ ମାସ ବୟସ୍କ ଶିଶୁପୁତ୍ରକୁ ଛାଡ଼ି ବ ୨୭ । ୭ ମାସରେ ଏ ଇହଲୀଳା ସାଙ୍ଗ କରିବେ ? କିନ୍ତୁ ବିଧିର ବିଧାନ ବିଚିତ୍ର ! ସେ ହଠାତ୍ ଦିନେ ମାତ୍ର ଶଯ୍ୟାଶାୟୀ ହୋଇ କେତେକ ଘଣ୍ଟା ମଧ୍ୟରେ ( ଅର୍ଥାତ୍ ସନ ୧୩୦୨ ସାଲ ଶ୍ରାବଣ ଶୁକ୍ଳ ଦ୍ୱିତୀୟାରେ ) ଇହଧାମ ତ୍ୟାଗ କରି ଚିରାନନ୍ଦମୟ ଧାମକୁ ଚାଲିଗଲେ ।

ଲୋକର ମୃତ୍ୟୁ ପରେ ତାର ଗୁଣାବଳୀ ବେଶି ଫୁଟି ବାହାରି ଉଠେ । ସେ ଅତ୍ୟନ୍ତ ମିଷ୍ଟଭାଷୀ ଥିବାରୁ ଲୋକପ୍ରିୟ ହୋଇଥିଲେ । ସେ ଯାହାକୁ ଥରେ ମାତ୍ର

ଦେଖିଥିଲେ, ଯାହାଙ୍କ ସହିତ ତାଙ୍କର ଥରେ ମାତ୍ର ଆଳାପ ହୋଇଥିଲା, ସେମାନେ ତାଙ୍କୁ ଅଦ୍ୟାବଧି ଭୁଲି ପାରି ନାହାନ୍ତି। ସତ୍ୟବାଦିତା ତାଙ୍କର ଗୋଟିଏ ମହତ୍ ଗୁଣ ଥିଲା । ଏପରି କି ଅନ୍ତୁ।ପରିହାସରେ ସୁଦ୍ଧା ସେ ମିଥ୍ୟା କହିବାର ଶୁଣା ଯାଇ ନ ଥିଲା। ତାଙ୍କର ସଂସାର ପ୍ରତି ଏତେଦୂର ଔଦାସୀନ୍ୟ ଥିଲା ଯେ, ସେ ତାଙ୍କର ଜୀବନରେ ଧନକ ପାଇଁ ସୁଦ୍ଧା ନିଜର ଜମିଦାରୀ ମହାଜନୀ ପ୍ରଭୃତି ବ୍ୟବସାୟରେ ମନୋଯୋଗ ଦେଇ କାର୍ଯ୍ୟ କରି ନ ଥିଲେ । ତାଙ୍କର ହୃଦୟର ବନ୍ଧୁ ସୀ ମାଜଣାସନ ନିବାସୀ ପିତୃବ୍ୟ ସ୍ୱାମୀୟ ଚୌଧୁରୀ ଶ୍ରୀ ଶ୍ରୀରାମ ମିଶ୍ରଙ୍କୁ ସମସ୍ତ ଭାର ଅର୍ପଣ କରି ନିଜେ ସଂସ୍କୃତାଧ୍ୟୟନରେ ଲିପ୍ତ ଥିଲେ। ସେ ଗୁଣିବ୍ୟକ୍ତିଙ୍କୁ ବହୁତ ଆଦର କରୁଥିଲେ। "ଗୁଣୀ ଗୁଣଂବେତ୍ତି ନ ବେତ୍ତି ନିର୍ଗୁଣଃ" । ସେ ଅନ୍ତ- ପରିଚାଳନରେ ଅଦ୍ଭୁତ କୌଶଳୀ, ପରଦୁଃଖରେ କାତର ଏବଂ ଈଶ୍ୱରନିଷ୍ଠ ଥିଲେ ।

ସେ ଅତି ପ୍ରତ୍ୟୁଷରେ ଶଯ୍ୟା ତ୍ୟାଗ କରି ସ୍ନାନାଦି କ୍ରିୟା ସମାପନାନ୍ତେ ଈଶ୍ୱରାରାଧନାରେ ଲିପ୍ତ ରହୁଥିଲେ। ଅହିଫେନ ପ୍ରଭୃତି ମାଦକ ଦ୍ରବ୍ୟ ତାଙ୍କର ହୃତ୍‌ପିଣ୍ଡ ସ୍ପର୍ଶ କରି ନ ଥିଲା । ସେ ତାଙ୍କର ଜୀବନର ଅତ୍ୟଳ୍ପକାଳ ବେଶ ସୁଖଶାନ୍ତିରେ ଅତିବାହିତ କରିଥିଲେ। ଦେବତା ବ୍ରାହ୍ମଣଙ୍କଠାରେ ତାଙ୍କର କପରି ଅଚଳା ଭକ୍ତି ଥିଲା, ତାହା ମହାବିନାୟକବାସୀ ଲୋକ-

ମାନଙ୍କ ମୁଖରୁ ଅଦ୍ୟାବଧି ଶୁଣାଯାଏ । ତାଙ୍କର ଅଷ୍ଟାବଂଶ ବର୍ଷବ୍ୟାପୀ ଜୀବନସଂଗ୍ରାମରେ, ସେ ଦିନେ ସୁଦ୍ଧା କାହାରି ଅଶାନ୍ତିଭାଜନ ହୋଇ ନ ଥିଲେ ।

**ଆତ୍ମକାହାଣୀ :—**

ପିତା କଏ ? ବା ପିତୃସୁଖ କଣ ? ତାହା ମୁଁ ଅନୁଭବ କରି ନାହିଁ । ମୁଁ ଯେତେବେଳେ ନଅ ମାସର ଶିଶୁ ସେତେବେଳେ ପିତା ମୋତେ ଦୁଃଖିନୀ ଜନନୀ କ୍ରୋଡ଼ରେ ଛାଡ଼ି ଦେଇ ଚାଲିଗଲେ । ମୁଁ ବା—ବା—ବୋଲି ଅସ୍ପଷ୍ଟସ୍ୱରରେ ନାମୋଚ୍ଚାରଣ କରିବା ପୂର୍ବରୁ ବିଧାତା "ବା" ଶବ୍ଦ କାଢ଼ି ନେଲେ । ବାପା ଡାକ ଅବାଧ୍ୟରୁ ମୋର ଅଧର ସ୍ପର୍ଶ କରି ପାରିଲା ନାହିଁ । ପିତାଙ୍କ ସସ୍ନେହଚୁମ୍ବନ ଗ୍ରହଣ କରିବାକୁ ମୁଁ ତପସ୍ୟା କରି ନ ଥିଲି । ପିତାଙ୍କ ମୁଖକାନ୍ତି ହୃଦଦର୍ପଣରେ ଧାରଣ କରିବାକୁ ମୁଁ ଭାଜନ ନୁହେଁ । ପିତାଙ୍କ କମଳ ପାଦକୁ ହୃଦରେ ଧରି ଭକ୍ତିଭରେ ଦିନେ ସୁଦ୍ଧା ମସ୍ତକ ନୁଆଁଇ ପାରିଲି ନାହିଁ ! ଶୋକ ଓ ଅଭାବରେ ଦିନେ ସୁଦ୍ଧା ବାପା, ବାପା ବୋଲି ପାଖରେ ଅଳି କରି ପାରିଲି ନାହିଁ । ଦେବଦୁର୍ଲ୍ଲଭ ପିତୃସ୍ନେହ ସୁପ୍ରାପ୍ୟ ହେଲେହେଁ ମୋ ଭୁଲ୍ୟ ଅଭାଗା ପକ୍ଷରେ ଆକାଶ-କୁସୁମବତ୍ ପ୍ରତିଭାତ ହେଲା । ପିତାଙ୍କର ସସ୍ନେହ "ରାଧାନାଥ" ଡାକ ମୁଁ ଶୁଣି ପାରିଲି ନାହିଁ । "ବାପା" ଶବ୍ଦଟି ମୋ

ପକ୍ଷରେ ଭୀଷଣ ହେଲା । ସଙ୍ଗୀମାନଙ୍କ ମୁଖରେ ମଧୁର "ବାପା" ଡାକ ଶୁଣିଲେ ମୁଁ ମର୍ମାହତ ହୁଏଁ । ହୃଦୟର ରକ୍ତ ସଙ୍କୁଚିତ ହୁଏ ଓ ମୋର ମୁଖମଣ୍ଡଳ ଦୁଃଖରେ ବିଶେଷତଃ ଲଜ୍ଜାରେ ନତ ହୁଏ ।

ଇତିହାସ ଓ ପୁରାଣମାନଙ୍କରେ କେତେ ଆଦର୍ଶ ପିତା ପୁତ୍ରଙ୍କ ବିଷୟ ପାଠ କରେଁ; କିନ୍ତୁ ମୁଁ ଅଭାଗା ! ମୁଁ ଜୀବନରେ ତାଙ୍କୁ ଛଦ୍ମରୂପେ ସୁଦ୍ଧା ଅନୁମାନ କରି ପାରିଲି ନାହିଁ । ପୁତ୍ର-ବତ୍ସଳ ଦ୍ରୋଣ " ନରୋ ବା କୁଞ୍ଜରୋ ବା ଅଶ୍ୱତ୍ଥାମା ହତ " ଏ କପଟ ବଚନ ଶୁଣି ପୁତ୍ର ଦୁଃଖରେ ଅଧୀର ହୋଇ ସାଗ୍ରହେ ମୃତ୍ୟୁର କରାଳ କବଳ ଆଲିଙ୍ଗନରେ ସୁଖାନୁଭବ କରି-ଥିଲେ । ସେ ପୁତ୍ର ପାଇଁ ପ୍ରାଣ ସୁଦ୍ଧା ତୁଚ୍ଛ ମଣିଥିଲେ । ଧନ୍ୟ ପିତାର ଅପତ୍ୟ ସ୍ନେହ ! ଧନ୍ୟ ପୁତ୍ର ବାତ୍ସଲ୍ୟ ! ଗତପ୍ରାଣ ଆଦର୍ଶ ପୁତ୍ର ଲକ୍ଷଣ ପିତା ଦୁର୍ଯ୍ୟୋଧନଙ୍କୁ ରକ୍ତନଦୀ ପାର କରି ନେଇ ମୃତାବସ୍ଥାରେ ସୁଦ୍ଧା ପିତାଙ୍କ ଉପକାର କରି ଧନ୍ୟ ହୋଇଥିଲା । ଦ୍ୱାଦଶ ବର୍ଷ ବୟସ୍କ କାସବିୟାନ୍କା ( Casabianca ) ପିତୃ ଆଦେଶକ୍ରମେ ଭୀଷଣ ଜ୍ୱଳନ୍ତ ଅଗ୍ନିଶିଖାରେ ପ୍ରାଣ ବିସର୍ଜନ କରିବାକୁ ଅଣୁମାତ୍ର କୁଣ୍ଠିତ ହୋଇ ନ ଥିଲା । ଏହିପରି ସହସ୍ର ସହସ୍ର ଆଦର୍ଶ ପୁତ୍ରର ଜ୍ୱଳନ୍ତ ଦୃଷ୍ଟାନ୍ତ ଅଧ୍ୟୟନ କରିଅଛି ସତ୍ୟ; କିନ୍ତୁ ସେହି ଉଦାହରଣରେ ନିଜକୁ ଅନୁପ୍ରାଣିତ କରି ସାମାନ୍ୟ ପିତୃ-

ଭକ୍ତିର ପରିଚୟ ଦେବାର ସୁବିଧା ପାଇ ନାହିଁ । ପିତାଙ୍କ ବଜ୍ରାଦପି କଠୋର ଆଦେଶର ପରମୁହୂର୍ତ୍ତରେ ଉଚ୍ଛାସିତ ସହାସ୍ୟ ସ୍ନେହମୟୀ ଭାଷା ଏ କର୍ଣ୍ଣକୁ ଶୀତଳ କରିପାରିଲା ନାହିଁ ।

ଲୋକେ କହନ୍ତି—ଯାହା ବାସ୍ତବରେ ନ ମିଳେ ଅନେକ ସମୟରେ ସ୍ୱପ୍ନଦ୍ୱାରା ସେ ସୁଖର ବା ଦୁଃଖର ଅନୁଭୂତି ହୁଏ । ମୁଁ ଏହି ବିଶ୍ୱାସର ବଶବର୍ତ୍ତୀ ହୋଇ କେତେ ନିଶାରେ ପିତାଙ୍କର ସ୍ୱରୂପ ସ୍ୱପ୍ନରେ ଦର୍ଶନ କରିବାକୁ ଇଚ୍ଛା କରିଅଛି, ସେ ଧାରଣା ଭ୍ରମ ଏହା ଜାଣି ସୁଦ୍ଧା କେ ଜାଣି ମୋ ଭାଗ୍ୟକୁ ସତ୍ୟ ହୋଇପାରେ, ସେ ଭରସା ଅଦ୍ୟାବଧି ତ୍ୟାଗ କରି ପାରି ନାହିଁ । ସମୟେ ସମୟେ ମନେ କରେ ପ୍ରେତ-ରୂପେ ଶ୍ମଶାନର ବୃକ୍ଷଶାଖାରେ ବାସ କରୁଅଛନ୍ତି କି ? କେତେ ଥର କେତେ ବୃକ୍ଷ ଖୋଜିଅଛି, କେତେ ଥର ସତୃଷ୍ଣ-ନୟନରେ ଅନାଇ ନୈରାଶ୍ୟ ଜର୍ଜରିତଚିତ୍ତରେ ପ୍ରତ୍ୟା-ବର୍ତ୍ତନ କରିଅଛି । ଶ୍ରାଦ୍ଧଦବସମାନଙ୍କରେ ଖୁବ୍ ସାବଧାନତା ସହକାରେ ଆଶାନ୍ୱିତଚିତ୍ତରେ ଅପେକ୍ଷା କରିଅଛି; କିନ୍ତୁ କାହିଁ ? ଦିନେ ସୁଦ୍ଧା ଏ ଚିରପୋଷିତ ବାଞ୍ଛାର ପରିତୃପ୍ତି ହେଲା ନାହିଁ ।

ଏହିପରି ବହୁ ଦିଗରୁ ପରୀକ୍ଷାରେ ଅକୃତକାର୍ଯ୍ୟ ହୋଇ-କେବଳ ଏକମାତ୍ର ଆଶା ହୃଦୟକନ୍ଦରରେ ପୋଷଣ କରି-ଅଛି । ଆଶା ଅଛି, ଯେଉଁ ଦିନ ଏ ମାଟିକଳେବର ମାଟିରେ

ମିଶିଯିବ, ସେ ଦିନ ମୁଁ ତାଙ୍କୁ ଦେଖି ଏ ଅତୃପ୍ତ ଆତ୍ମାର ତୃପ୍ତି-ସାଧନ କରିବି ? ସେ ଦିନ ଭକ୍ତିଭରେ ବାପା—ବାପା—ବୋଲି ପଦତଳେ ପ୍ରଣାମ କରି ପଡ଼ିବି ;—

"ପିତଃ, ଯେଉଁ ଦିନ ପ୍ରଥମେ ଆପଣଙ୍କର ଚବିପଠ ଖଣ୍ଡି ଦଶରଜପୁର କଚେରୀ ପ୍ରକୋଷ୍ଠରେ ମୋର ଦୃଷ୍ଟିପଥାରୂଢ଼ ହେଲା, ସେ ଦିନର ଘଟଣା ମନେ ଅଛି କି ? ଆପଣ ଅମର-ଜଗତରେ ବିଦ୍ୟମାନ ଥାଇ ମୋର ଦଗ୍ଧ ଅନ୍ତର ଜାଣି ପାରି ଅଛନ୍ତି କି ? ପଟ ଖଣ୍ଡି ନୟନଗୋଚର ହେଲାକ୍ଷଣି ମୁଁ ଯଦିଚ ସେତେବେଳେ ସାମାନ୍ୟ ହତାଦୃତ ଜ୍ଞାନଶୂନ୍ୟ ବାଳକ, ମୋର ଗାତ୍ର ରୋମାଞ୍ଚିତ ଓ କୋମଳ ହୃଦୟ କମ୍ପିତ ହେଲା । କେ ଜାଣି କାହିଁକି ଅଲକ୍ଷିତ ଭାବରେ ମୋର ଚିରପ୍ରଫୁଲ୍ଲିତ ନେତ୍ରଦ୍ୱୟରୁ ଦୁଇ ବିନ୍ଦୁ ଅଶ୍ରୁ ଝରି ପଡ଼ିଲା । ମୁଁ କାନ୍ଦି ଶିଖି ନ ଥିଲି, କିନ୍ତୁ ମୋର ସେ ଦିନ ପ୍ରଥମେ ମର୍ମକ୍ରନ୍ଦନ ଆରମ୍ଭ ହେଲା, ମର୍ମବେଦନାର ପ୍ରଥମ ଆଘାତ ହୃଦୟରେ ପ୍ରତିଘାତ ହେଲା, ସେ ଦିନ ଜାଣିଲି ସଂସାରରେ ସମସ୍ତଙ୍କୁ କାନ୍ଦିବାକୁ ହୁଏ । ମନୁଷ୍ୟ କାନ୍ଦିବାକୁ ଜନସମାଜରେ ଜନ୍ମଗ୍ରହଣ କରିଅଛି । ପିତଃ ଏ କଥା କି ମନେ ଅଛି ?

ପୁଣି କେତେକ ବର୍ଷ ପରେ ମାତା ଓ ପିତାମହୀଙ୍କର ଅନିଚ୍ଛା-ସତ୍ତ୍ୱେ ସେ ପଟ ବା ଫଟୋ ଖଣ୍ଡି ନୂତନ ଛପା କରାଇ ମୋର

ଶୟନକକ୍ଷରେ ଝୁଲାଇଲ । ଇଚ୍ଛା ହୁଏ ପ୍ରଭାତେ ଫୁଲହାର ଦେଇ ପୂଜା କରିବ; ମାତ୍ର ଯେତେବେଳେ ମନେ ପଡ଼େ ସେ ସ୍ୱର୍ଗରୁ ମୁଁ ଈଶ୍ୱରଙ୍କଦ୍ୱାରା ବଞ୍ଚିତ, ସେତେବେଳେ ଅନ୍ତର ପୁନର୍ବାର ନୈରାଶ୍ୟସାଗରରେ ମଗ୍ନ ହୁଏ ଓ ଲଜ୍ଜାରେ ମର୍ମାହତ ହୋଇ ସେଥିରୁ ନିବୃତ୍ତ ହୁଏ । ଶ୍ମଶାନ ଅତିକ୍ରମ କଲାବେଳେ ଟିକିଏ ଠିଆ ହୋଇ ହବେଁ ଓ ଦୁଗ୍ଧଫେନନିଭସୁକୋମଳ ଶଯ୍ୟାଯୁକ୍ତପଲଙ୍କ ଓ କର୍କଶ ତୃଣାଚ୍ଛାଦିତ ବାଲୁକାସ୍ତରଣକୁ ତୁଳନା କରେଁ, ତେତେବେଳେ ଶେଷୋକ୍ତ ଶଯ୍ୟାହିଁ ପ୍ରକୃତ ସ୍ୱର୍ଣକନାବୃତ ଶଯ୍ୟା ବୋଲି ସ୍ଥିର କରେଁ । ସେ ଶୟନହିଁ ପ୍ରକୃତ ଶୟନ, ସେ ଶୟନରେ ନିଦ୍ରାଭଙ୍ଗ ଭୟ ନାହିଁ । ପାର୍ଥିବ କୋଳାହଳରେ ତାହାର ବିନାଶ ନାହିଁ, ସେଠାରେ ଶୋକଦୁଃଖବଞ୍ଚିତ କାର ତାଣ୍ଡବ ନାହିଁ । ସେ ଶାନ୍ତିପ୍ରଦ ସୁଖନିଦ୍ରା । ଏହି ଶାନ୍ତି ଲାଭ କରିବାକୁ କି ଆପଣ ସ୍ୱାର୍ଥପରତାର ପରିଚୟ ଦେଇ ଏକାକୀ ଚାଲିଗଲେ ?

ପିତଃ, ଆଶୀର୍ବାଦ କର, ମୋର କାମନା ପୂର୍ଣ୍ଣ ହେଉ । ଆପଣ ଯେଉଁ ଜ୍ୱଳନ୍ତ ଦୃଷ୍ଟାନ୍ତମାନ ମୋର ସମକ୍ଷରେ ରଖି ଦେଇ ଯାଇଅଛନ୍ତି, ମୁଁ ସେହି ଆଦର୍ଶ ଦର୍ପଣରେ ନିଜର ପ୍ରତିବିମ୍ବ ଦେଖି ଜୀବନ ଗଠନ କରେଁ । ଚିରସନ୍ତାପିତହୃଦୟା ବୈଧବ୍ୟବଧୂର ଜନନୀ ଓ ବୃଦ୍ଧା ପିତାମହୀଙ୍କର

ଚରଣସେବାରେ ଏ ଜୀବନକୁ ଧନ୍ୟ ମନେ କରେଁ । ଆଶୀର୍ବାଦ କର, ମୁଁ ସଂସାରକ୍ଷେତ୍ରରେ ତୁମ୍ଭର ପନ୍ଥାନୁସରଣ କରି ତୁମ୍ଭର ଯୋଗ୍ୟପୁତ୍ର ବୋଲି ଅଭିହିତ ହୁଏ ଓ ତୁମ୍ଭର ଯଶ-ସୌରଭରେ ସୌରଭାନ୍ୱିତ ହୋଇ ତୁମ୍ଭର ଚରଣ ଦର୍ଶନ କରେଁ, ଏତିକି ପ୍ରାର୍ଥନା । ତୁମ୍ଭର ଉଦ୍ଦେଶ୍ୟରେ କୋଟି କୋଟି ପ୍ରଣାମ କରି ମୋର ବକ୍ତବ୍ୟର ଉପସଂହାର କରୁ-ଅଛି ।"

ଶ୍ରୀକୃଷ୍ଣାର୍ପଣମସ୍ତୁ ।



Printed by V. Kar. The U. S. Press, Cuttack.

